# ଅମର ଶହୀଦ
# ଗ୍ରନ୍ଥମାଳା






ଗୁରୁଜୀ ବୁକ୍ ଷ୍ଟଲ
ଝାଞ୍ଜିରୀମଙ୍ଗଳା, କଟକ-୯

# ଅମର ଶହୀଦ ଗ୍ରନ୍ଥମାଳା — ୬

ଲେଖକ :

କୃତ୍ତିବାସ ନାୟକ, ଏମ୍. ଏ. ( ଗବେଷକ )

ପ୍ରକାଶକ :

ଶ୍ରୀନିବାସ ଗୁରୁ
ଗୁରୁଜୀ ବୁକ୍‌ଷ୍ଟଲ
କଟକ-୯

ମୁଦ୍ରଣ :

ଗୁରୁଜୀ ପ୍ରିଣ୍ଟର୍ସ
ଝାଞ୍ଜିରିମଙ୍ଗଳା, କଟକ-୯

ପ୍ରଥମ ସଂସ୍କରଣ :

୧୯୮୭

ମୂଲ୍ୟ : ଟ ୪-୦୦ ମାତ୍ର

# AMARA SAHEED GRANTHA MALA-6

By : **Kruttibas Nayak,** M. A.

Publisher : **Gurujee Book Stall**
Cuttack-9

Printer :**Gurujee Printers**
Cuttack-9

1st Edition : **1987**

Price Rs : **4-00**

# ଉତ୍ସର୍ଗ

ସ୍ୱାଧୀନତାର ଆନ୍ଦୋଳନ ରୂପକ ଜାତୀୟ ମହାଯୁଦ୍ଧରେ ଆତ୍ମବଳୀ ଦେଇଥିବା ଅଗଣିତ ମହାନ ଶହୀଦମାନଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ……



# ସୂଚୀ





# ମହା ସମାଧି

ସେଦିନ ଥିଲା ୧୯୪୨ ମସିହା ସେପ୍‌ଟେମ୍ବର ମାସ ଅଠେଇଶି ତାରିଖ । ମେଲଣ ପଡ଼ିଆରେ ରକ୍ତର ସ୍ରୋତ ବହି ଯାଉଥାଏ । ଅଠେଇଶି ଜଣ ମହାପୁରୁଷଙ୍କ ପ୍ରାଣହୀନ ପିଣ୍ଡ ଏଣେ ତେଣେ ହୋଇ ପଡ଼ିଥାଏ । ସେହିକାଳ ରାତ୍ରର ବୁଲୁଫଟା ବିକଳ କ୍ରନ୍ଦନରେ ଇରମ ଅଞ୍ଚଳ ହୁଳୁସ୍ଥୁଲ ହେଉଥାଏ । କେତେ ବୁଢ଼ାବୁଢ଼ୀ ନିଜର ଯୁବା ପୁଅକୁ ହରାଇଥାନ୍ତି । କେତେ ଯୁବତୀ ନାରୀ ନିଜର ସ୍ୱାମୀର ଶବ ଉପରେ ପଡ଼ି ପାଗଳିନୀ ପରି ଗଡ଼ି ଯାଉଥାନ୍ତି । କୁନି କୁନି ପୁଅ ଝିଅ ବାପାଙ୍କ ଶବ ପାଖରେ ଠିଆ ହୋଇ ଭୋ-ଭୋ ରଡ଼ି ଛାଡ଼ୁଥାନ୍ତି । କି ଭୟଙ୍କର ସେ ଦୃଶ୍ୟ ।



ଅଠେଇଶିଟି ଶବ ଭିତରୁ ବାଛି ବାଛି ଏଗାରଟି ଶବକୁ ତାଙ୍କର ଆତ୍ମୀୟମାନେ ନିଜ ଘରକୁ ନେଇ ସଂସ୍କାର

କଲେ । ବାଳକା ସତରଟି ଶବକୁ ସେଇ ମେଲଣ ପଡ଼ିଆର ଗୋଟିଏ କୋଣରେ ପୋତି ଦିଆଗଲା । ସତରଜଣ ବୀର ଶହୀଦଙ୍କର ଗୋଟିଏ ସମାଧି ହେଲା । ତାହା ହେଲା—ମହାସମାଧି ।

ଭାରତର ସ୍ୱାଧୀନତା ସଂଗ୍ରାମ କାଳରେ ରକ୍ତତୀର୍ଥ ଇରମରେ ଯେଉଁ ଗୁଳିକାଣ୍ଡ ଘଟିଯାଇଛି, ତାକୁ କେବଳ ପଞ୍ଜାବର ଜାଲିଆନ୍‌ୱାଲାବାଗ ଗୁଳିକାଣ୍ଡ ସହିତ ତୁଳନା କରାଯାଇପାରେ ।



ବାଲେଶ୍ୱର ଜିଲ୍ଲାର ବାସୁଦେବପୁର ଥାନା ଅନ୍ତର୍ଗତ ଇରମ ଥିଲା—ସେତେବେଳର କଂଗ୍ରେସ କର୍ମୀଙ୍କର ରାଜନୈତିକ କେନ୍ଦ୍ର ବିନ୍ଦୁ । କଂଗ୍ରେସର ନେତାମାନଙ୍କ ମଧ୍ୟରୁ ଅନିରୁଦ୍ଧ ମହାନ୍ତି, ଗୌରାଙ୍ଗ ଚରଣ ମହାନ୍ତି ଏବଂ କମଳା ପ୍ରସାଦ କର ବିଭିନ୍ନ ସମୟରେ ସଭାସମିତି କରି ଆନ୍ଦୋଳନକୁ ତେଜି ରଖିଥିଲେ । ଫଳରେ ଚୌକିଦାର ଓ ଦଫାଦାରଙ୍କ ପୋଷାକ ପୋଡ଼ିବା, ହାଟ ଓ ଶିକ୍ଷାନୁଷ୍ଠାନରେ ହରତାଳ ପାଳନ କରିବା, ସରକାର ଓ

ଜମିଦାରଙ୍କୁ ଟିକସ ନ ଦେବା, ବାସୁଦେବପୁର ଥାନା ପୋଡ଼ିବା ପାଇଁ ପଦକ୍ଷେପ ଗ୍ରହଣ କରିବା ଆଦି କାର୍ଯ୍ୟକ୍ରମ ବେଶ୍ ସଫଳ ହୋଇ ପାରିଥିଲା ।

କେବଳ ସେତିକି ନୁହେଁ, ସେତେବେଳର ୟୁନିୟନ ପ୍ରେସିଡେଣ୍ଟ ନାରାୟଣ ମାନ୍ଧାତା ଜଣେ ଖରାପ ପ୍ରକୃତିର ଲୋକ ହୋଇଥିବାରୁ ତାଙ୍କୁ ଇସ୍ତଫା ଦେବାପାଇଁ ବାଧ କରିବା ଓ ସେଠାକାର ଜମିଦାର ରାଧାକାନ୍ତ ପାଢ଼ୀଙ୍କର ଅମାର ଭାଙ୍ଗିବା ପାଇଁ ଧମକ ଦେବା କାର୍ଯ୍ୟକ୍ରମଗୁଡ଼ିକୁ ସତ୍ୟାଗ୍ରହୀମାନେ ଗ୍ରହଣ କରିଥିଲେ । ଏସବୁ କାମକୁ ତଦାରଖ କରିବା ସଙ୍ଗେ ସଙ୍ଗେ ଆନ୍ଦୋଳନକୁ ଚେତାଉଥିବା ନେତାମାନଙ୍କୁ ଗିରଫ କରିବା ଉଦ୍ଦେଶ୍ୟରେ ଏକ ପୋଲିସ ଫୌଜ ବାସୁଦେବପୁର ଥାନାରୁ ବାହାରି ଇରମ ଅଭିମୁଖେ ଚାଲିଲେ ।

ସେହି ପୋଲିସ ଫୌଜ ଡ଼ି. ଏସ୍. ପି. କୁଞ୍ଜବିହାରୀ ମହାନ୍ତିଙ୍କ ନେତୃତ୍ୱରେ ଅଠର ଜଣ ସଶସ୍ତ୍ର ପୋଲିସ କନେଷ୍ଟବଳ, ଜଣେ ଅସ୍ଥାୟୀ ଗୋଇନ୍ଦା ପୋଲିସ, ଜଣେ ଜମାଦାର, ଜଣେ ହାବିଲଦାର, ଜଣେ ଇନ୍‌ସପେକ୍ଟର ଓ ଜଣେ ସବ୍‌ଇନ୍‌ସପେକ୍ଟରଙ୍କୁ ନେଇ ଇରମ ଆଡ଼କୁ ମାଡ଼ି ଚାଲିଥାଆନ୍ତି ।

କୌଣସି ବିପଦର ସୂଚନା ପାଇଲେ, କିମ୍ବା ପୋଲିସ, ଇଂରେଜ କର୍ମଚାରୀ ଗାଆଁ ଭିତରକୁ ପଶିଲେ, ସେତେବେଳେ ଆଗ ଯିଏ ଏ ଘଟଣା ଦେଖୁଥିଲା—ଶଙ୍ଖଧ୍ୱନି ଦ୍ୱାରା ଅନ୍ୟ ଗ୍ରାମବାସୀଙ୍କୁ ଜଣାଇ ଦେଉଥିଲା । ଇଂରେଜ ଫୌଜ ଇରମକୁ ମାଡ଼ି ଯିବାର ଦେଖି ଶଙ୍ଖଧ୍ୱନି ଦ୍ୱାରା

ଗୋଟିଏ ଗାଆଁର ଅନ୍ୟ ଗାଆକୁ ଏହିଭଳି ସମ୍ବାଦ ମୁହୂର୍ତ୍ତକ ମଧ୍ୟରେ ପହଞ୍ଚାଇ ଦିଆଗଲା । ଶହ ଶହ ହଜାର ହଜାର ଲୋକ ଗାଆଁରୁ ବାହାରି ମେଲଣ ପଡ଼ିଆକୁ ଛୁଟିଲେ ।



ସେଠାରେ ଏକ ଶାନ୍ତିସଭା ବସିଲା । ଗଣେଶ-ପ୍ରସାଦ ତ୍ରିପାଠୀ ଏହି ସଭାକୁ ପରିଚାଳନା କରୁଥାଆନ୍ତି । ଶେଷରେ ଲୋକେ ଧ୍ୱନିଦେଲେ—"ଅତ୍ୟାଚାରକୁ ଡରିବୁ ନାହିଁ । ଗୁଳିଗୁଳାକୁ—ଡରିବୁ ନାହିଁ । ମହାତ୍ମାଗାନ୍ଧୀ କି—ଜୟ ।"

ଠିକ୍ ଏତିକିବେଳେ ପୋଲିସ ଫୌଜ ସଭାସ୍ଥଳ ଦେଇ ଜମିଦାର ରାଧାକାନ୍ତଙ୍କ ଘରେ ପହଞ୍ଚିଲେ । ତାଙ୍କ ପଛରେ ପୋଲିସ ଫୌଜଙ୍କର ବନ୍ଧୁକଣାପତ୍ର ଧରି ତିନିଜଣ ଚୌକିଦାର ଚାଲିଥାନ୍ତି । ଶାନ୍ତିସଭା ଭିତରୁ ଦୁଇଜଣ ଲୋକ ଚୌକିଦାରଙ୍କୁ ଅଟକାଇ କହିଲେ—"ତୁମେ ଗୋଲାମ-ମାନଙ୍କର ବନ୍ଧୁକଣା ନେଇ ଯାଇପାରିବ ନାହିଁ ।" ତାପରେ ସେ ବନ୍ଧୁକଣାପତ୍ରକୁ ଛଡ଼ାଇ ତାଙ୍କଠାରୁ ରଖିଦେଲେ ।

ଚୌକିଦାରମାନେ ବନ୍ଧଣାପନ୍ତ ଛାଡ଼ି ପୋଲିସ ଫୌଜ ଆଗରେ କାନ୍ଦିବାର ଛଳନା କରି ଜଣାଇଲେ— "ଆମକୁ ମାରି ପକେଇ ଥାଆନ୍ତେ, ଭାଗ୍ୟବଳରୁ ଆମେ ବନ୍ଧଣା ଛାଡ଼ି ଚାଲି ଆସିଛୁ ।"

ପୋଲିସମାନଙ୍କୁ ଉତ୍ତେଜିତ କରିବା ପାଇଁ ଚୌକିଦାରମାନେ ଆହୁରି କେତେ କ'ଣ ମିଛ କହିଥିବେ, ତାର ଠିକ୍ ନାହିଁ । ପ୍ରକୃତ ସତ୍ୟାସତ୍ୟ ଅନୁସନ୍ଧାନ ନକରି, କିଛି ଘଟଣା ନ ବୁଝି ଇନ୍‌ସପେକ୍ଟର କହିଲେ—"ଆଜି ନିଶ୍ଚୟ ଗୁଳି ଚାଲିବ" । ଡ଼ି. ଏସ୍ ପି. କୁଞ୍ଜବିହାରୀ ମହାନ୍ତି ମଧ୍ୟ ତାଙ୍କ କଥାକୁ ସମର୍ଥନ କରି କହିଲେ—"ଇରମରେ ମୁଁ ନରମେଧ ଯଜ୍ଞ କରିବି ।"

ପୋଲିସଙ୍କର ମନ୍ତବ୍ୟ ସଭାସ୍ଥଳରେ ପହଞ୍ଚିଲା । ମେଳଣ ପଡ଼ିଆଟା ସତେ ଯେମିତି ଲୋକ ସମୁଦ୍ର ହୋଇ



ଯାଇଛି । ଇରମର ବାୟୁମଣ୍ଡଳ ବେଶ୍ ସରଗରମ ହୋଇ ଉଠୁଥାଏ । ଏଭଳି ପରିସ୍ଥିତିରେ କେତେବେଳେ କ'ଣ

ଘଟିଯିବ, ତାହା କେହି ଚିନ୍ତା କରିପାରୁ ନଥିଲେ । ସୂର୍ଯ୍ୟ ବୁଡ଼ି ଆସୁଥାଆନ୍ତି । ପୋଲିସ ଫୌଜ ଇରମ ମେଳଣ ପଡ଼ିଆ ଆଡ଼କୁ ମାଡ଼ି ଆସିଲେ । ସଭାର ଅଳ୍ପ ଦୂରରୁ କେତେଥର ଫାଙ୍କା ଗୁଳି ଫୁଟାଇଲେ ।

ଆନ୍ଦୋଳନକାରୀ ସଂଗ୍ରାମୀମାନେ ସେ ଗୁଳିକୁ ଖାତିର ନକରି, ମହାତ୍ମା ଗାନ୍ଧୀ ଙ୍କ ଜୟଧ୍ୱନି ଦେଲେ । ଡ଼. ଏସ୍. ପି. କୁଞ୍ଜବିହାରୀ ମହାନ୍ତିଙ୍କ ଆଦେଶରେ ପୋଲିସ ନିରସ୍ତ୍ର ଜନତାଙ୍କ ଉପରେ ଅମାନୁଷିକ ଭାବେ ଏକଶହ ତିରିଶି ରାଉଣ୍ଡରେ ତିନିଶହ ଚଉଷଠି ଗୁଳି ମରାଗଲା । ସେହି ଗୁଳି ମାଡ଼ରେ ଘଟଣା ସ୍ଥଳରେ ଅଠେଇଶିଟି ଶରୀର ତଳି ପଡ଼ିଲା । ଆଉ କେତେକଜଣ ଆହତ ହୋଇ ଜୀବନ ବିକଳରେ ଧାଇଁ ପଳାଇଲେ । ଗୁଳି ମାଡ଼ଖାଇ ଜଣେ ଆହତ ବୀର କୋରାପୁଟ ଜେଲରେ ଶହୀଦ ହେଲେ ।



ଗୁଳିକାଣ୍ଡ ଘଟଣା ମୁହୂର୍ତ୍ତଙ୍କ ମଧ୍ୟରେ ବିଜୁଳି ବେଗରେ ଚତୁର୍ଦ୍ଦିଗରେ ବ୍ୟାପିଗଲା ।

ସେତେବେଳକୁ ମେଳଣ ପଡ଼ିଆରେ ରକ୍ତର ସୁଅ ଫିଟି ଯାଇଥାଏ । ଆଖପାଖ ସବୁ ଗାଁରୁ ଶହ ଶହ ଲୋକ ଆକୁଳ ହୃଦୟ ବିକଳ କ୍ରନ୍ଦନରେ ସେ ପଡ଼ିଆକୁ ଧାଇଁଲେ । କିଏ କାହାର ପୁଅ, କିଏ କାହାର ବାପା ଆଉ କିଏ କାହାର ସ୍ୱାମୀ, ଚିହ୍ନି ହେଉ ନଥିଲା । କିଟି କିଟି ଅନ୍ଧାର ଭିତରେ ରକ୍ତରେ ଭିଜିଥିବା ପଡ଼ିଆ ଭିତରେ ମୃତ ସ୍ୱାମୀ, ମୃତ ପିତା, ମୃତ ପୁତ୍ରକୁ ଦେଖି ପକାଇ କିଏ କିପରି ଅବସ୍ଥାରେ ଥିଲା, ତାହା ବର୍ଣ୍ଣନା କରିହେବ ନାହିଁ ।

ଭାରତ ଇତିହାସରେ ଜାଲିଆନୱାଲାବାଗ ହତ୍ୟାକାଣ୍ଡକୁ ଛାଡ଼ିଦେଲେ, ଏଭଳି ବିଭତ୍ସ ଅମାନୁଷିକ ନରସଂହାର ଘଟଣା ଅନ୍ୟ କେଉଁଠି ଘଟିନାହିଁ ।

ଯେଉଁ ବୀରମାନେ ଆମ ପାଇଁ ଏତେ ତ୍ୟାଗ କରିଛନ୍ତି । ଆଜି ତାଙ୍କୁ ସ୍ମରଣ କରିବା ଆମର ପ୍ରଥମ କର୍ତ୍ତବ୍ୟ । ତାଙ୍କର ତ୍ୟାଗ ଆଉ ରକ୍ତଦାନ ଯେ ଆମ ସ୍ୱାଧୀନତା ପ୍ରାପ୍ତିର କାରଣ । ଏ କଥା କେହି ଅସ୍ୱୀକାର କରିପାରିବେ ନାହିଁ ।

ଜୟହିନ୍ଦ୍





# ଫାଶୀ ଖୁଣ୍ଟରେ ଉଦ୍ଧାମ ସିଂ

ପଞ୍ଚ ନଦୀର ଅଞ୍ଚଳେ,
ରକ୍ତର ସୁଅ ବହିଲା ସେଦିନ—
ଜାଲିଆନାବାଗ ଭୂଇଁ ତଳେ ।

× × ×

ଗୁଡ଼ମ୍ ଗୁଡ଼ମ୍ ଆବାଜ ଶୁଭିଲା—
ହୁକୁମ ଦେଇଛି ଓ ଡ଼ାୟାର,
ଅଗ୍ନି ଶିଖାରେ କି ଖେଳ ଖେଳୁଛି—
ହୁସିଆର ଏବେ ହୁସିଆର

ବୁଲେଟ୍ ଚାଲିଲା ଅସୁମାର,
ଧାଗ ଧାଗ ହୋଇ ଲୁଟିଲେ ହଠାତ୍—
ଯହିଁ ଥିଲେ ଯେତେ ନରନାରୀ ।

× × ×

ଏହି କବିତାଟି ଆଜି ଶହୀଦ ବୀର ଉଦ୍ଧାମ ସିଂଙ୍କର କଣ୍ଠସ୍ୱର ଆମ ପାଖରେ ପହଞ୍ଚାଇ ଦିଏ ।

ପଞ୍ଜାବର ଅମୃତସରର "ଜାଲିଆନୱାଲାବାଗ୍ ଗୋଟିଏ ବିଖ୍ୟାତ ପାର୍କ । ସେହି ପାର୍କରେ ଆମ ଦେଶର ନେତାମାନେ ବସି ପ୍ରତିବାଦ ସଭା କରୁଥାନ୍ତି । ସେଦିନ ଥିଲା—୧୯୧୯ ମସିହା ଏପ୍ରିଲ ମାସ ୧୩ ତାରିଖ । ସେତେବେଳେ ଭାରତସାରା ଅଶାନ୍ତି ଲାଗି ରହିଥାଏ । ତେଣୁ ଇଂରେଜ ସରକାର ସଭା-ସମିତି କରିବାକୁ ସୁବିଧା ଦେଉ ନଥାନ୍ତି ।

ଭାରତର ବଡ଼ ବଡ଼ ନେତାମାନେ ସରକାରଙ୍କ କଥାକୁ ନ ମାନି ସେଇ ପାର୍କରେ ଏକଯୁଟ ହୋଇଥାନ୍ତି । ଏ ଘଟଣା ଇଂରେଜ ପୋଲିସ ଅଫିସରମାନେ ଜାଣିଲେ ।



ଜେନେରାଲ ଡାୟାର ନାମକ ଜଣେ ବଡ଼ ନିଷ୍ଠୁର ପୋଲିସ ଅଫିସର ସେ ସଭାକୁ ଭାଙ୍ଗିବାକୁ ଯାଇଥିଲେ । ପଚିଶ ହଜାର ଜନତାଙ୍କର ପଦାକୁ ବାହାରିବା ବାଟରେ ରହି ସେ ଆଖିବୁଜା ଗୁଳି ଚଳାଇଲେ । ଲୋକେ ପଦାକୁ ଯିବାକୁ ବାଟ ପାଇଲେ ନାହିଁ । ଜୀବନ ବିକଳେ କିଏ କ'ଣ କରିବେ ସ୍ଥିର କରିପାରିଲେ ନାହିଁ । କେତେକ ପାଚେରୀ ଡେଇଁ ପଳାଇ ଜୀବନ ରକ୍ଷା କଲେ । ହଜାର ହଜାର ନିରସ୍ତ୍ର ଜନତା ପୋକ ମାଛି ପରି ମରି ଝଡ଼ି ପଡ଼ିଲେ ।

ଆହତ ଜନତାଙ୍କ କରୁଣ ଚିତ୍କାରରେ ଅମୃତସର କମ୍ପି ଉଠିଲା । କିନ୍ତୁ ଏ ଶବ୍ଦ ଇଂରେଜମାନଙ୍କ କାନରେ ପଡ଼ି ନଥିଲା ।

ଏଭଳି ଅମାନୁଷିକ ନରମେଧ ଯଜ୍ଞ ବିଶ୍ୱରେ ଅନ୍ୟତ୍ର କେଉଁଠି ଘଟି ନଥିଲା । ଏହି ଘଟଣାରେ ସାରା ଭାରତରେ ନିଆଁ ଜଳି ଉଠିଲା । କିନ୍ତୁ ଇଂରେଜ ସରକାର ସାମରିକ ଆଇନ ବଳରେ ଲୋକଙ୍କୁ ଘରୁ ବାହାର କରାଇ ଦେଲେ ନାହିଁ ।

ଏହି ହତ୍ୟାକାଣ୍ଡ ଘଟିବାର ଅଳ୍ପ ସମୟ ପୂର୍ବରୁ ଯେଉଁ ନାଁ ବାଳକ ପିଲା ବୁଲି ବୁଲି ଜନତାଙ୍କୁ ପାଣି ପିଆଉ ଥିଲେ, ସେ ପୁଣି ଏତେବଡ଼ ଘଟଣାର ପ୍ରତିଶୋଧ ନେବ, ସେ କଥା କେହି ଜାଣି ନଥିଲେ ।

ନୃଶଂସ ନରହନ୍ତା ଡାୟାର ଏବଂ ମୁଖ୍ୟ ଅପରାଧୀ ମାଇକେଲ ଠାରୁ ଏହାର ପ୍ରତିଶୋଧ କଡ଼ା ଗଣ୍ଡା କରି ଆଦାୟ କରିବାକୁ ସେ ସେଦିନ ଶପଥ ନେଇଥିଲେ । ପିଲାଟିର ମନକଥା ମନରେ ଥାଏ । ଜାଲିଆନାୱାଲାବାଗର ହତ୍ୟାକାଣ୍ଡ, ଡାୟାରର ରକ୍ତମୁହଁ ଆଉ ଆହତ ଭାରତୀୟଙ୍କର ବିକଳ କ୍ରନ୍ଦନ ତାଙ୍କ ଆଖି ଆଗରେ ସବୁବେଳେ ନାଚି ଉଠୁଥାଏ । କେବଳ ଉପାୟ ଆଉ ଉପାୟ । ଉପାୟ ଖୋଜି ବୁଲିବା ସାର । ଆନ୍ତରିକ ଚେଷ୍ଟା, ସ୍ଥିତପ୍ରଜ୍ଞ ଚିନ୍ତା ଏବଂ ଧୀର ଭାବନା ଥିଲେ ଉପାୟ ବଳେ ବଳେ ଆସି ପହଞ୍ଚି ଯାଏ ।

୧୯୧୯ ଏପ୍ରିଲ ୧୩ ତାରିଖଠାରୁ ୧୯୪୦ ମସିହା ମାର୍ଚ୍ଚ ମାସ ୩ ତାରିଖ ଦୀର୍ଘ ୨୦ ବର୍ଷ ଏହା ମଧ୍ୟରେ ବିତିଗଲା ।

ଇଷ୍ଟଇଣ୍ଡିଆ ଆସୋସିଏସନ୍ ଓ ରୟାଲ ସେଣ୍ଟ୍ରାଲ ଏସିଆନ୍ ସୋସାଇଟି ତରଫରୁ ଲଣ୍ଡନର କାକ୍ଷ୍ଟନ୍ ହଲରେ ଗୋଟିଏ ସଭା ଡକାଯାଇଥିଲା । ଦର୍ଶକମାନଙ୍କ



ଦ୍ୱାରା ହଲ୍‌ଟି ପୂରି ଉଠିଥାଏ । ସଭାପତି ଆସନରେ ବସିଥାନ୍ତି, ଲର୍ଡ଼ ଜ୍ୟାଟଲେଣ୍ଡ । ସଭାମଞ୍ଚ ଉପରେ ଥାଆନ୍ତି, ସାର୍ ମାଇକେଲ ଓ ଡାୟ୍ୟାର, ଲର୍ଡ଼ ଲାମିଂଟନ୍ ଓ ସାର୍ ଲୁଇଡେ଼ନ୍ ।

ଜେନରାଲ ଡାୟାରଙ୍କର ଭାଷଣ ଶେଷ ହେଲା । ସଭାସ୍ଥଳରେ କରତାଳି ଧ୍ୱନି କମି ଉଠିଲା । ଏତିକିବେଳେ ଯୁବକଟିଏ ସଭାମଞ୍ଚ ଉପରକୁ ଉଠିଗଲେ । ଗୁଡ଼ୁମ୍ ଗୁଡ଼ୁମ୍ କରି ପିସ୍ତଲର ଗୁଳି ଛୁଟାଇ ଦେଲେ । ଅବ୍ୟର୍ଥ ଗୁଳିଗୁଡ଼ିକ ଯାଇ ଡାୟାରଙ୍କ ଦେହରେ ଟପ୍ ଟାପ୍ ଗଳିଗଲା । ଚାହୁଁ ଚାହୁଁ ସଭାମଞ୍ଚରେ ଉପସ୍ଥିତ ଜନତା ଆତଙ୍କିତ ହୋଇ ଉଠିଲେ । ଡାୟାରଙ୍କର ମର ଶରୀର ସଭାମଞ୍ଚରେ ଗଡ଼ି ପଡ଼ିଲା । ଅନ୍ୟ ଦୁଇଜଣ ଗୁଳିଖାଇ ଆହାତ ହେଲେ ।

ସାମାନ୍ୟ ଟିକିଏ ସୁଦ୍ଧା ବିଚଳିତ ନ ହୋଇ ଯୁବକ ସେହି ସଭାମଞ୍ଚରେ ଠିଆ ହୋଇ ରହିଲେ । ଦର୍ଶକ କେତେଜଣ ଯୁବକଙ୍କୁ ଧରିନେଲେ । ପୋଲିସ ଘେରିଗଲେ । ଯୁବକ ବନ୍ଦୀ ହେଲେ ।

ବ୍ରିଟିଶ୍ ଅଦାଲତରେ ତାଙ୍କର ବିଚାର ଚାଲିଲା । ଜେନେରାଲ ଡାୟାରଙ୍କର ହତ୍ୟାକାରୀର ବିଚାର ଶୁଣିବା ପାଇଁ ସେଦିନ ଲୋକାରଣ୍ୟ ହୋଇଥାଏ । ଯୁବକ ଜଣକ ନିଜର ଓକିଲ ପରାମର୍ଶକୁ ଖାତିର ନକରି ଦୃଢ଼ ଭାବେ କହିଲେ—ମୁଁ ନିଜ ହାତରେ ନରପିଶାଚ ଡାୟାରକୁ ହତ୍ୟା କରିଛି । ମୁଁ ତାକୁ ହତ୍ୟାକରି କିଛି ଅନ୍ୟାୟ କରି ନାହିଁ ।

ଜାଲିଆନାୱାଲାବାଗ୍ ଠାରେ ଏଇ ନୃଶଂସ ହତ୍ୟାକାରୀ ଯେଉଁ ଅମାନୁଷିକ ହତ୍ୟାକାଣ୍ଡ ଘଟାଇ ଥିଲା । ତାହାଥିଲା ମାନବ ସମାଜ ପାଇଁ ଏକ କଳଙ୍କ । ମୁଁ ଏହି ବିଶ୍ୱରୁ କଳଙ୍କ ଲିଭାଇ ଦେଇଛି ମାତ୍ର ।

ବୀର ଶିଖ୍ ଯୁବକଙ୍କର ଏଭଳି ସ୍ପଷ୍ଟବାଦୀ ମନ୍ତବ୍ୟ ଶୁଣି ଇଂରେଜ ଜଜ୍ ଆଦେଶ ଦେଲେ—"ଏହି ଯୁବକକୁ ନିର୍ଜନ ସ୍ଥାନରେ ରଖାଯାଉ ।"

କାରଣ ଏହି ଯୁବକଙ୍କ ମନ୍ତବ୍ୟ ଭାରତୀୟମାନଙ୍କ କାନରେ ପଡ଼ିଲେ, ସେମାନେ ଖେପି ଉଠିବେ । ହିଂସା

ପରାଯ୍ମୁଖ ହୋଇ ଉଠିବେ । ଏହି ଯୁବକଙ୍କ ମନ୍ତବ୍ୟ ଯେପରି ବାହାରକୁ ନଯାଇ ପାରିବ, ସେଥିପାଇଁ ଜଜ୍ ମୋକଦ୍ଦମା ରେକର୍ଡ଼ କାଗଜପତ୍ରରୁ ଯୁବକଙ୍କ ଜମାନବନ୍ଦୀକୁ ସମ୍ପୂର୍ଣ୍ଣ ଭାବେ ଉଠାଇ ଦେବାକୁ ସ୍ୱତନ୍ତ୍ର ଆଦେଶ ଦେଲେ ।

ଫଳରେ ଶିଖ୍ ଯୁବକଙ୍କ ମନ୍ତବ୍ୟ ଭାରତରେ ପହଞ୍ଚି ପାରିଲା ନାହିଁ । ତାଙ୍କର ନିଷ୍ଠା, ତ୍ୟାଗ ଆଉ ଦେଶପ୍ରେମ ଏବଂ ପ୍ରତିଶୋଧର କାହାଣୀ କେହି ଜାଣିପାରିଲେ ନାହିଁ ।

ଫାଶୀ ପାଇବାକୁ ଅପେକ୍ଷା କରି ସେଇ ଯୁବକ କିପରି ଭାବୁଥିଲେ, ତାହା ଅନୁଭବ କରି କବି ଗାଇଛନ୍ତି—

ଜନ୍ମଦା ମୋର ଭାରତ ଭୁଇଁର—
ବହୁ ଦୂରେ ସାଥୀ ବହୁ ଦୂରେ
ବନ୍ଦୀ ମୁଁ ଆଜି ଉଦ୍ଧାମ ସିଂ
ଏଇ ଲଣ୍ଡନର କାରାପୁରେ ।।



ନିର୍ଦ୍ଦିଷ୍ଟ ତାରିଖରେ ବୀର ଶିଖ୍ ଯୁବକ ହସି ହସି ଫାଶୀ ଖୁଣ୍ଟରେ ଚଢ଼ିଗଲେ । ଲଣ୍ଡନ ଭୂଇଁରେ ନିଜର ଆତ୍ମସମ୍ମାନ ଏବଂ ଜାତୀୟ ସମ୍ମାନ ରକ୍ଷା କରି ସେ ଦେଶ-ପ୍ରେମ ମହତ୍ତ୍ୱ ଦେଖାଇ ଦେଲେ । ସେହି ବୀର ଯୁବକ ତାଙ୍କର ନାମର ସାର୍ଥକ କରି ଉଦ୍ଧାମ ଗତିରେ ଫାଶି ଖୁଣ୍ଟରେ ଝୁଲି ପଡ଼ିଲେ । ଧନ୍ୟ ଉଦ୍ଧାମ ସିଂହ । ତାଙ୍କର ତ୍ୟାଗ, ନିଷ୍ଠାର ଫଳ ଆଜି ଆମେ ଉପଭୋଗ କରୁଛନ୍ତି ।

ଜୟହିନ୍ଦ୍





# ପ୍ରକୃତ ବୀର

ଇଂରେଜ ଅମଳର କଥା । ଅତ୍ୟାଚାରୀ ଇଂରେଜ କମିଶନର ରେଡ୍ ସାହେବଙ୍କ ଅନ୍ୟାୟକୁ ଭାରତୀୟମାନେ ଆଉ ସହିପାରିଲେ ନାହିଁ ।

୧୮୭୭ ମସିହା ଜୁନ୍ ମାସରେ ଦୁଇ ଭାଇ ଦାମୋଦର ଓ ବାଳକୃଷ୍ଣ ଚାପେକର କମିଶନରଙ୍କୁ ହତ୍ୟା କଲେ । ଫଳରେ ଇଂରେଜମାନେ ଦୁଇ ଭାଇଙ୍କୁ ବନ୍ଧୁ କଷ୍ଟରେ ଧରି ହତ୍ୟା କଲେ । ଏହି ଘଟଣାରେ



ଦେଶପ୍ରେମୀମାନେ ଦବିଯିବା ବଦଳରେ ଏହାର ପ୍ରତିଶୋଧ ନେବାକୁ ଶପଥ ନେଲେ । ଚଉଦ ବର୍ଷର ଜଣେ ଦେଶପ୍ରେମୀ ବାଳକ ହୃଦୟରେ ନବଜାଗରଣ ସୃଷ୍ଟି

ହେଲା । ସେ ତାର ଇଷ୍ଟଦେବୀ ଦୁର୍ଗାଙ୍କ ପାଖରେ ଶପଥ କଲା—ଏ ଜୀବନ ଦେଇ ଦେଶକୁ ରକ୍ଷା କରିବ ।

ବିଦ୍ୟାଳୟରେ ପାଠ ପଢ଼ୁଥିବା ବେଳେ ସେ ଶପଥ କଥା ମନେ ରଖିଥାଏ । କେତେଜଣ ପିଲାଙ୍କୁ ଏକଯୁଟ କରି 'ମିତ୍ରମେଳା' ନାମକ ଦଳ ଗଠନ କଲା । କିଛିଦିନ ଭିତରେ 'ମିତ୍ରମେଳା'ରେ ବହୁତ ସାଙ୍ଗ ପିଲା ସ୍ୱଇଚ୍ଛାରେ ଯୋଗଦାନ କଲେ ।

ପିଲାଟି ବୁଝିଥାଏ—ଦେଶକୁ ଇଂରେଜ ହାତରୁ ମୁକ୍ତ କରିବାକୁ ହେଲେ, ଅଧିକ କିଛି ପାଠ ପଢ଼ିବାକୁ ପଡ଼ିବ । ଏତେ ବଡ଼ ଦେଶକୁ କିଭଳି ଭାବେ ରକ୍ଷା କରିହେବ, କେଉଁ କେଉଁ ଉପାୟ ଖଞ୍ଜିଲେ, ଇଂରେଜମାନେ ଦେଶ ଛାଡ଼ି ଯିବାକୁ ବାଧ୍ୟ ହେବେ, ସେ ବିଷୟ ଚିନ୍ତା କରିବାକୁ ଲାଗିଲେ । କଥାରେ ଅଛି ଇଚ୍ଛାଥିଲେ—ଉପାୟ ବଳେ ବଳେ ଆସେ ।

ହାଇସ୍କୁଲ ପଢ଼ାପରେ ପିଲାଟି କଲେଜରେ ପାଠ ପଢ଼ିଲା । ସେଠାରେ କେତେକ କଲେଜ ପିଲାଙ୍କୁ ନେଇ ସେ 'ଅଭିନବ ଭାରତ' ନାମକ ଏକ ନୂଆ ସଂସ୍ଥା ଗଠନ କଲେ । ମନ କଥା, ଶପଥ କଥାଟି ପିଲାଟି ମନରେ ଦୃଢ଼ ହୋଇ ରହିଥାଏ ।

୧୯୦୫ ମସିହାରେ ବଙ୍ଗଭଙ୍ଗ ଆନ୍ଦୋଳନ ଚାଲିଥାଏ । ପିଲାଟିକୁ ଆଉ କିଏ ସମ୍ଭାଳେ ? ସେ ସାଙ୍ଗମାନଙ୍କୁ ଏକଯୁଟ କରି ପୁନାର ଗୋଟିଏ ଛକ ଜାଗାରେ ଇଂରେଜୀ ଜିନିଷ, ବସ୍ତ୍ର ଗଦା କରି ନିଆଁ ଲଗାଇଦେଲେ । ଏ ଘଟଣା ଦେଖି

ଆଖପାଖ ଲୋକ ଛାନିଆଁ । ଇଂରେଜ ଜିନିଷ ପୋଡ଼ିବା ଅର୍ଥ ତାଙ୍କୁ ଅବମାନନା କରିବା ସଙ୍ଗେ ସମାନ ।



କଲେଜର ଅଧ୍ୟକ୍ଷ ପିଲ୍ଲିଙ୍କୁ ୧୦ ଟଙ୍କା ଜୋରିମାନା କଲେ ଏବଂ ଶେଷରେ ତାଙ୍କୁ କଲେଜରୁ ସବୁଦିନ ପାଇଁ ବହିଷ୍କାର କରିଦେଲେ ।

୧୯୦୬ ମସିହା ବେଳକୁ ସେ ନିଜ ଚେଷ୍ଟାରେ କଲେଜର ପଢ଼ା ଶେଷ କରି, ଆଇନ ଶିକ୍ଷା କଲେ । ଏଥିପାଇଁ ତାଙ୍କୁ ଲଣ୍ଡନ ଯିବାକୁ ପଡ଼ିଲା । ଲଣ୍ଡନରେ ରହିବା ଓ ପାଠ ପଢ଼ିବା ପ୍ରଭୃତିରେ ଲୋକମାନ୍ୟ ତିଲକ ଓ ଶ୍ୟାମକୃଷ୍ଣ ବର୍ମା ସାହାଯ୍ୟ କରିଥିଲେ ।

ସଂଗ୍ରାମୀ ଯୁବକ ବିଦେଶରେ ଥିଲେ ମଧ୍ୟ ଦେଶ ଚିନ୍ତା କରୁଥାନ୍ତି । ଭାରତରେ ପ୍ରତିଷ୍ଠା ଲାଭ କରିଥିବା 'ଅଭିନବ ଭାରତ' ସଂସ୍ଥା ଲଣ୍ଡନର ଇଣ୍ଡିଆ ହାଉସ୍‌ରେ ପରିଚାଳିତ ହେଲା । ସେଠାରେ ଯୁବକ ରହି ଗୁପ୍ତରେ ଅସ୍ତ୍ରଶସ୍ତ୍ର ଭାରତକୁ ପଠାଉଥିଲେ ।

୧୮୫୭ରେ ଯେଉଁ ସିପାହୀ ବିଦ୍ରୋହ ଘଟିଥିଲା । ତାର ସୁବର୍ଣ୍ଣ ଜୟନ୍ତୀ ପାଳନ କରାଯାଉଥାଏ । ବିପ୍ଳବୀ ଯୁବକ ଏ ଉପଲକ୍ଷେ "ସ୍ୱାଧୀନତା ଯୁଦ୍ଧ" ନାମକ ଏକ ପୁସ୍ତକ ପ୍ରକାଶ କଲେ । ସେଥିରେ ସେ ପ୍ରତ୍ୟେକ ଭାରତୀୟଙ୍କୁ ଜାଗରଣ ପାଇଁ ଆହ୍ୱାନ ଦେଇଥିଲେ । ପୁସ୍ତକଟି ଜନସାଧାରଣରେ ଖୁବ୍ ଆଦୃତ ହେଲା ।

ଏହି ସମ୍ବାଦ ପାଇ ଇଂରେଜ ପୋଲିସ ପୁସ୍ତକଟିକୁ ଜବତ୍ କରିନେଲେ । ଅଭିନବ ଭାରତ ସଂସ୍ଥାର ବିପ୍ଳବୀ ମଦନଲାଲ କର୍ଜ୍ଜନଓ୍ୱାଲି ନାମକ ଜଣେ ଇଂରେଜ ଅଫିସରଙ୍କୁ ଲଣ୍ଡନରେ ହତ୍ୟା କଲେ । ଭାରତର ନାସିକରେ ଗୋରା କଲେକ୍ଟର ମଧ୍ୟ ପ୍ରାଣ ଦେଲେ । ଫଳରେ ୩ ଜଣ ବିପ୍ଳବୀଙ୍କୁ ଏଥିପାଇଁ ଫାଶୀ ମିଳିଲା । ଧରପଗଡ଼ ଚାଲିଲା । 'ଅଭିନବ ଭାରତ' ସଂସ୍ଥାର ମୁଖ୍ୟଙ୍କୁ ଖୋଜା ଚାଲିଲା । ଶେଷରେ ଯୁବକଙ୍କୁ ଲଣ୍ଡନରେ ଗିରଫ କରାଗଲା ।

କଡ଼ା ଜଗିରଖା ସହ ଜାହାଜରେ ଯୁବକଙ୍କୁ ଭାରତ ପଠାଇ ଦିଆଗଲା । ବିପ୍ଳବୀ ଯୁବକଙ୍କୁ ଉଦ୍ଧାର କରିବା ପାଇଁ ମାଡ଼ାମ୍ କାମା ଓ ଭି. ଭ. ଏସ୍. ଆୟାର ଫ୍ରାନ୍ସ ଉପକୂଳକୁ ଯାଇଥିଲେ ।

ସାହସୀ ଯୁବକ ଜାହାଜର ଝରକା ଭାଙ୍ଗି ଅନନ୍ତ ସାଗର ବକ୍ଷକୁ ଲମ୍ଫ ପ୍ରଦାନ କଲେ । ଦୃଢ଼ ମନୋବଳ, ଅସୀମ ସାହସର ସହ ସେ ଅନନ୍ତ ସାଗରରେ ପହଁରିବା

ଆରମ୍ଭ କରିଦେଲେ । ଆଶ୍ଚର୍ଯ୍ୟର କଥା—ସେ ପହଁରି ପହଁରି ଫ୍ରାନ୍ସର ଭୂମଧ୍ୟ ସାଗରୀୟ ଉପକୂଳରେ ପହଞ୍ଚିଲେ । ଇଂରେଜ ପୋଲିସ ପିଛାଧରି ଗୋଡ଼ାଇଲେ । ଶେଷରେ ସେ ପୁଣି ଥରେ ଧରାପଡ଼ି ବମ୍ବେ ଆସିଲେ ।

ବମ୍ବେ କୋର୍ଟରେ ବିଚାର ଚାଲିଲା । ଶେଷରେ ବିପ୍ଳବୀ ଯୁବକଙ୍କୁ ପଚାଶ ବର୍ଷ ପାଇଁ କାରାଦଣ୍ଡ ମିଳିଲା । ଭାରତର ଜନତା ଅଶାନ୍ତି ଅନୁଭବ କଲେ ।



ଆଣ୍ଡାମାନ ଜେଲରେ ୧୦ ବର୍ଷକାଳ ରହିଲାପରେ ତାଙ୍କୁ ୧୯୨୧ରେ ମହାରାଷ୍ଟ୍ରର ରତ୍ନଗିରି ଜେଲକୁ ଅଣାଗଲା । ୧୯୩୭ ମସିହା ପର୍ଯ୍ୟନ୍ତ ତାଙ୍କୁ ନଜର ବନ୍ଦୀରେ ରଖାଗଲା । ବମ୍ବେର ଗୃହମନ୍ତ୍ରୀ ଜମୁନା ଦାସ ମେହେନ୍ତା ତାଙ୍କୁ ପୂର୍ଣ୍ଣ ଭାବରେ ମୁକ୍ତି ପ୍ରଦାନ କଲେ । ଦେଶର ଚାରିଆଡ଼ୁ ସ୍ୱାଗତ, ସମ୍ବର୍ଦ୍ଧନାସୂଚକ ବାର୍ତ୍ତା ଆସି ଅଜାଡ଼ି ହୋଇପଡ଼ିଲା । ସେ ମୁକ୍ତ ହୋଇ ପୁଣି ଦେଶ ମାତୃକା ସେବାରେ ମନପ୍ରାଣ ଢାଳି ଦେଲେ ।

ଭାରତମାତା ସ୍ୱାଧୀନ ହେଲ । ଏହି ମହାନ ବୀର ବିପ୍ଲବୀ ଯୁବକ ସେତେବେଳେ କୌଣସି କ୍ଷମତା-ପଦବୀରେ ରହିଲେ ନାହିଁ । ତାଙ୍କର ସ୍ୱପ୍ନ ସଫଳ ହେଲ । ସେଥିରେ ସେ ଆତ୍ମସନ୍ତୋଷ ଲାଭ କଲେ । ୧୯୭୭ ମସିହାରେ ଏହି ମହାନ୍ ଆତ୍ମା, ବୀରପୁରୁଷ ଇହଲୀଳା ଶେଷ କଲେ । ସେ ଥିଲେ ପ୍ରକୃତ ବୀର, ଭାରତମାତାର ସୁଯୋଗ୍ୟ ସନ୍ତାନ—ବୀର ବିନାୟକ ସଭରକର । ତାଙ୍କ ପାଇଁ ଆମେ ଗର୍ବିତ ।

ଜୟହିନ୍ଦ୍

●



# ବଣ ମୂଲକର ଶହୀଦ

ଆମ ଦେଶକୁ ଇଂରେଜମାନଙ୍କ କବଳରୁ ମୁକ୍ତ କରିବା ପାଇଁ ଯେଉଁ ଆଦିବାସୀ ଭାଇମାନେ ପ୍ରାଣବଳୀ ଦେଇଛନ୍ତି, ସେମାନଙ୍କ ମଧ୍ୟରୁ ଯେଉଁ ଦୁଇଭାଇଙ୍କ ନାମ ସ୍ମରଣୀୟ ସେ ହେଉଛନ୍ତି—ସିଦୋ ଓ କାହ୍ନୁ । ଅନ୍ୟାୟ କରିବା ଯେତିକି ଅପରାଧ, ଅନ୍ୟାୟକୁ ସହିଯିବା ତା'ଠାରୁ ବେଶି ଅପରାଧ । ଏ କଥା ସେମାନେ ହୃଦୟଙ୍ଗମ କରିଥିଲେ । ସେଇ ଦୁଇ ଭାଇ କିପରି ଦେଶ ପାଇଁ ପ୍ରାଣ ଦେଇ ଶହୀଦ ହୋଇଛନ୍ତି, ସେ ବିଷୟରେ ଜାଣିବାକୁ ଇଚ୍ଛା ହୁଏ ।

ଆମ ଦେଶରେ ବହୁ ପ୍ରକାର ଆଦିବାସୀ ବିଭିନ୍ନ ରାଜ୍ୟରେ ବାସ କରି ଆସୁଛନ୍ତି । ସେମାନେ ଯେପରି



ବଳିଷ୍ଠ, କର୍ମଠ, ପ୍ରଭୁଭକ୍ତ, କଷ୍ଟ ସହିଷ୍ଣୁ, ସେହିପରି ସରଳ । ଓଡ଼ିଶା, ବିହାର ଓ ପଶ୍ଚିମବଙ୍ଗରେ ଯେଉଁ ବୃହତ୍

ଆଦିବାସୀ ଗୋଷ୍ଠୀ ବସବାସ କରନ୍ତି, ସେମାନେ ହେଉଛନ୍ତି, ସାନ୍ତାଳ ସମ୍ପ୍ରଦାୟ । ସାନ୍ତାଳମାନେ ବଣ, ଜଙ୍ଗଲ, ପାହାଡ଼ ଘେର ଭିତରେ ଆରାମରେ ଥାଆନ୍ତି । ସେମାନେ ବଣରୁ ଫଳମୂଳ ଖାଇ, ଝରଣା ପାଣି ପିଇ, ଗୀତଗାଇ, ନାଚ ନାଚ ମଉଜ କରନ୍ତି । ନିଜ ଦୁଃଖରେ ସେମାନେ ଲାଗି ରହନ୍ତି । ସହରର ଅଶାନ୍ତି ତାଙ୍କୁ ସହଜରେ ଛୁଇଁପାରେ ନାହିଁ ।

ଇଂରେଜ ଶାସନ କାଳରେ ନୂଆ ରେଳରାସ୍ତା ପଡ଼ୁଥାଏ । ଏଥିପାଇଁ ବହୁତ ଶ୍ରମିକ ଦରକାର ଥାଏ । ତେଣୁ ଇଂରେଜ କର୍ମଚାରୀମାନେ ବଣ, ପାହାଡ଼ ଭିତରେ ଥିବା ସରଳ ସାନ୍ତାଳମାନଙ୍କୁ ଧରନେଲେ । ସେଠାରେ ତାଙ୍କୁ ବେଠି ଖଟାଇଲେ । ଦିନସାରା ସାନ୍ତାଳମାନେ କାମ କରି ଭୋକ ଉପାସରେ ଘରକୁ ଫେରନ୍ତି । ତାଙ୍କର ଅପରାଧ କ'ଣ ? ତାଙ୍କୁ ଏମିତି କାହିଁକି କଷ୍ଟ ସହିବାକୁ ପଡ଼ୁଛି ? ସରଳ ସାନ୍ତାଳମାନେ ଜାଣିପାରୁ ନ ଥାନ୍ତି । ଦୁଃଖ କାହାକୁ ଜଣେଇବେ ? ଦିନଯାକ ପରିଶ୍ରମର ମଜୁରି କିଏ ଦେବ ?



ଯିଏ କାମରେ ଲଗାଉଛନ୍ତି, ଯିଏ ଖାଲି ମାଡ଼ ଗାଳି ଆଉ ଧମକ ଦିଅନ୍ତି । ବଡ଼ ବଡ଼ ସାହେବ ହାକିମଙ୍କ ପାଖକୁ ଯାଇ ସେମାନେ ନିଜର ଦୁଃଖ ଜଣାଇ ମଧ୍ୟ କିଛି ସୁଫଳ ପାଇପାରିଲେ ନାହିଁ । ସାନ୍ତାଳ ସମାଜରେ ଅଶାନ୍ତିର ଛାୟା ଖେଳିଗଲା । ଜଣକ ଠାରୁ ଦୁଇଜଣ ମିଶି, ସମଗ୍ର ସାନ୍ତାଳ ଶ୍ରମିକ ଆଉ ଏ ଅନ୍ୟାୟ, ଅତ୍ୟାଚାର ସହିଯିବାକୁ ପ୍ରସ୍ତୁତ ହେଲେ ନାହିଁ । ଇଂରେଜମାନଙ୍କ ବିରୁଦ୍ଧରେ ସେମାନେ ବିଦ୍ରୋହ କରିବାକୁ ପ୍ରସ୍ତୁତ ହେଲେ ।

୧୮୫୫ ମସିହା ଜୁନ୍‌ମାସ ୩୦ ତାରିଖ । ସେ ଦିନ ଓଡ଼ିଶା, ବିହାର ଏବଂ ପଶ୍ଚିମବଙ୍ଗର ସମସ୍ତ ସାନ୍ତାଳ ଜାଗି ଉଠିଲେ । ଇଂରେଜ ବିରୁଦ୍ଧରେ ଏକ ହେଲେ ।

ସାନ୍ତାଳମାନେ ବୁଝିଗଲେ—ବିଦେଶୀ ଇଂରେଜ-ମାନେ ବେପାର କରିବାକୁ ଆସି ଆମର ମାଲିକ ହେବାକୁ ବସିଲେଣି । "ମୂଳୁ ମାଇଲେ ଯିବ ସରି । ଦେବଙ୍କ ସଙ୍ଗେ କିମ୍ପା କଳି ।" ଏଇ ନୀତିରେ ସେମାନେ ଭାରତରୁ ସେମାନଙ୍କୁ ହଟାଇ ମୂଳପୋଛ କରିବାକୁ ଯୋଜନା କଲେ । ଏହି ଯୋଜନାର ନେତୃତ୍ୱ ନେଲେ—ଦୁଇଜଣ ଦେଶ ଜାତି ପ୍ରେମୀ, ବଳିଷ୍ଠ ଯୁବକ ସିଦୋ ଓ କାହ୍ନୁ । ଏ ଦୁହେଁ ଥିଲେ ଦୁଇଭାଇ ।

ଆଦିବାସୀ ଗାଁ । ଭଙ୍ଗା ଡ଼ିହ ଗୋଟାଏ ବଡ଼ ଖୋଲା ଜାଗା । ଠାକୁରାଣୀ ମଣ୍ଡପ ପାଖରେ ସିଦୋ ଆଉ କାହ୍ନୁ



ମୁର୍ମୁଙ୍କ ସାମନାରେ ଦଶହଜାର ସାନ୍ତାଲ ଶପଥ ନେଲେ । ଜୟ ଜୟକାର ଧ୍ୱନି ଏବଂ ଯୁଦ୍ଧ ନାଗରାରେ ସମଗ୍ର ସାନ୍ତାଳ



ରାଜ୍ୟ ଗର୍ଜି ଉଠିଲା । ଦେଶଭକ୍ତ ସାନ୍ତାଲମାନେ ଆଗକୁ ମାଡ଼ି ଚାଲିଲେ । ପ୍ରଥମେ ଇଂରେଜ ଅଫିସ୍‌ଗୁଡ଼ିକ ଉପରେ ଚଢ଼ଉ ହେଲା । ସାନ୍ତାଲମାନେ ଆକ୍ରମଣ କରି ଜଣେ

ଟେଯାଲସ୍ ଦାରୋଗାକୁ ହତ୍ୟା କଲେ । ତା'ପରେ ଇଂରେଜ ମାରଣ ଅଭିଯାନ ଆରମ୍ଭ ହେଲା ।



ଭାଗଲପୁର ଜିଲ୍ଲାର ଇଂରେଜ କଲେକ୍ଟର ସେତେବେଳେ ରାଜାଙ୍କ ଉଆସରେ ରହୁଥାଆନ୍ତି । ସାନ୍ତାଳମାନେ ରାଜାଙ୍କ ଉଆସ ଆକ୍ରମଣ କରିବା କଥା ଜାଣିପାରି କଲେକ୍ଟର ଗୁପ୍ତରେ ଖସି ପଳାଇଲେ । ଏ ଖବର ପାଇ ସରକାରୀ ଜଙ୍ଗଲ ରକ୍ଷୀମାନେ ବିଦ୍ରୋହୀ ସାନ୍ତାଳମାନଙ୍କ ଉପରେ ଆଖିବୁଜା ଗୁଳି ଚଳାଇଲେ । ଫଳରେ ଶହ ଶହ ସାନ୍ତାଳ ବିଦ୍ରୋହୀ ଶହୀଦ ହେଲେ ।

ମିଷ୍ଟର ଠୁ. ଗୁଡ୍ ନାମକ ଜଣେ ଇଂରେଜ ମାଜିଷ୍ଟ୍ରେଟ୍ ବହୁ ସୈନ୍ୟ ଧରି ସାନ୍ତାଳ ବିଦ୍ରୋହ ଦମନ

କରିବାକୁ ଆସି ପହଞ୍ଚିଲେ । ବିଦ୍ରୋହୀ ସାନ୍ତାଳମାନେ ଅପୂର୍ବ ସାହସ ଦେଖାଇ ଧନୁ, ତୀର ଦ୍ୱାରା ଇଂରେଜ ସୈନ୍ୟଙ୍କୁ ଆକ୍ରମଣ କଲେ, କିନ୍ତୁ ଇଂରେଜ ସୈନ୍ୟ ଆଧୁନିକ ଅସ୍ତ୍ର-ଶସ୍ତ୍ର, ବନ୍ଧୁକ ଦ୍ୱାରା ସଜ୍ଜିତ ହୋଇଥିଲେ । ତୀର-ବନ୍ଧୁକ ଯୁଦ୍ଧରେ ଇଂରେଜ ସୈନ୍ୟମାନେ ବିଜୟ ଲାଭ କଲେ । ଶହ ଶହ ସାନ୍ତାଳ ବିଦ୍ରୋହୀ ପ୍ରାଣ ଦେଲେ । ନେତା ସିଦୋ ଓ କାହ୍ନୁ ଗୁଳି ମାଡ଼ରେ ଆହତ ହୋଇ ବନ୍ଦୀ ହେଲେ ।



ବିଚାରାଳୟରେ ଦୁଇ ଭାଇଙ୍କର ବିଚାର ଚାଲିଲା । ଶେଷରେ ତାଙ୍କୁ ଫାଶୀଦଣ୍ଡ ମିଳିଲା । ୧୮୫୫ ମସିହା ଜୁଲାଇ ମାସ ୨୪ ତାରିଖ ଦିନ ବୀର ସନ୍ତାନ ସିଦୋ ଓ କାହ୍ନୁଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଗଲା । ଦୁଇ ଭାଇ ଦେଶ ପାଇଁ ପ୍ରାଣ ଦେଇ-ଯେଉଁ ସାହସ ଦେଖାଇ ଶହୀଦ ହୋଇଗଲେ, ପରବର୍ତ୍ତୀ ସମୟରେ ତାହା ସ୍ୱାଧୀନତା

ଲଢ଼େଇ ଦଗରେ ଭାରତୀୟମାନଙ୍କୁ ବହୁତ ଆଗେଇ ନେଇ ପାରିଥିଲା ।



ଆଜି ଆମେ ସ୍ୱାଧୀନ ଭାରତର ନାଗରିକ ହୋଇ ସୁଖରେ ଚଳୁଥିବା ବେଳେ, ସେହି ଶହୀଦଙ୍କୁ ମନେ ପକାଇ ଭକ୍ତିପୂତ ପ୍ରଣାମ ଜଣାଇବା ଉଚିତ୍ ।

ଜୟହିନ୍ଦ୍ !





# ଶିଶୁ ଶହୀଦ ବାଜି ରାଉତ

ଭାରତର ସ୍ୱାଧୀନତା ସଂଗ୍ରାମ ।

ଏ ସଂଗ୍ରାମରେ କେବଳ ଯୁବକ, ପ୍ରୌଢ଼, ବୃଦ୍ଧ ନ ନାରୀମାନେ ଯେ ଶହୀଦ ହୋଇଥିଲେ ସେ କଥା ନୁହେଁ— ଶହ ଶହ ଶିଶୁ ଶହୀଦ ହୋଇଥିଲେ ।

ଶହ ଶହ ଉଦୟ୍ମ ଭାନୁର ସମାଧି ରଚନା କରିଥିଲେ ବ୍ରିଟିଶ ସରକାର ।

ସେହି ସବୁ ଶିଶୁ ସୂର୍ଯ୍ୟଙ୍କ ମଧ୍ୟରୁ ସୂର୍ଯ୍ୟଟିଏ ବାଜିଆ ।

ବାର ବର୍ଷର ଗୋଲ୍‌ଗାଲ୍ ପିଲ୍‌ଟିଏ । ପିଲ୍‌ଟିଏ କ'ଣ ପହ୍ଲମାନଟିଏ । ଶକ୍ତ ଶକ୍ତ ହାତ ଗୋଡ଼ । ଶାଳୁଆ ଗଜା ପରି ବାହା । ଯାହାକୁ ଦେଖିଲେ ଶତ୍ରୁ ମଧ୍ୟ ଶଙ୍କିଯିବ ।

ଓଡ଼ିଶାର ଢେଙ୍କାନାଳ ଜିଲ୍ଲା—ନୀଳକଣ୍ଠପୁର ଗାଆଁରେ ତା'ର ଘର । ପିଲ୍ଦିନରୁ ବାପ ମରିଯାଇଛି, ବିଧବା ମାଆଟିଏ । ସେଇ ବୀର ମାତା କୋଳରେ ବାଜିଆ ଏଡ଼ୁଟିରୁ ଏଡ଼ୁଟିଏ ହୋଇଛି ।



ପିଲାଟି ଦିନରୁ ବାଜିଆଟା ଏକ ଜିଦିଆ, ଯାହା ବୁଝିଥିବ ସେଇଆ। ବ୍ରାହ୍ମଣୀ ନଈ ତା'ର ଖେଳ ଘର। ସକାଳୁ ଜାଲ ଖାଲେଇ ଧରି ସେଇ ନଈକୁ ସେ ବାହାରିଯାଏ। ମନଇଚ୍ଛା ମାଛ ଧରେ। ପହଁରେ ଖେଳେ। ସତେ ଯେମିତି ନିତିଦିନିଆ ସାଥୀ, ବ୍ରାହ୍ମଣୀ ନଈ ହେଉଛି ତା'ର ମାଆ, ଆଉ ସେ ହେଉଛି ତା'ର ପୁଅ।

ଗାଆଁରେ ପିଲାଠୁଁ ବୁଢ଼ାଯାଏ ବାଜିଆକୁ ସମସ୍ତେ ଭଲ ପାଆନ୍ତି। କାହାର ବିପଦ ଆପଦ ପଡ଼ିଲେ ବାଜିଆ ଯାଇଁ ସେଠି ହାଜର। ଜୀବନକୁ ବାଜି ଲଗେଇ ସେ ତାଙ୍କର ସେବା କରି ଚାଲିଥିବ।

ସେ ଦିନ କ'ଣ ହେଲା କେଜାଣି, ଗାଆଁସାରା ହଇଚଇ ପଡ଼ିଲା। କେବେ ସିନା ଗାଆଁର ଜଣେ ଦି'ଜଣଙ୍କ

ଉପରକୁ ବିପଦ ଆସେ, ସେଦିନ ସମସ୍ତଙ୍କ ଉପରକୁ ଆସୁଥିଲା ସେ ବିପଦ । ଗାଆଁ ସାରା କୋଲୁଆ ଭୟ । ବ୍ରିଟିଶ ସରକାର ତା'ର ଦଳବଳ ନେଇ ସିଧା ଯାଜପୁରରୁ ଏଇ ଗାଆଁକୁ ଆସୁଛି ମଣିଷ ଶୀକାର ପାଇଁ ।

ଯେତେବେଳେ ସମସ୍ତଙ୍କ ଉପରକୁ ମାଡ଼ି ଆସୁଛି ସେ ବିପଦ, ସେତେବେଳେ ବାକି କି ଆଉ ଅସ୍ତ୍ର ଧରନ୍ତା ? ସେ ଯାଇଁ ପ୍ରଜାମଣ୍ଡଳୀ ସଭାରେ ପହଞ୍ଚିଲା । ନମ୍ର ଅଥଚ ଧୀର ସ୍ୱରରେ ଗାଆଁ ପଧାନକୁ କହିଉଠିଲା ହେଲା ମତେ ଆଜ୍ଞା ଦିଅନ୍ତୁ ମୁଖିଆ, ମୁଁ ଜଗିବି ବ୍ରାହ୍ମଣୀ ନଈର ଘାଟ । ଶତ୍ରୁ ତ ଶତ୍ରୁ ବଳେଇ ଛୁଆ ଟିଏ ବି ଏପାରିକୁ ଛାଡ଼ିଦେବି ନାହିଁ ।

ଗାଆଁ ମୁଖିଆ, ତା' ବେକରେ ଫୁଲମାଳ ପିନ୍ଧେଇ ଦେଲେ—ମୁଣ୍ଡରେ ପଗଡ଼ି ଭିଡ଼ି ଦେଲେ । ବାଜିଆ ଯାଇଁ ଘାଟ ଜଗିଲା ।



ସେଦିନ ହେଉଛି ୧୯୩୮ ମସିହା ଅକ୍‌ଟୋବର ୧୦ ତାରିଖ । ବାଜିଆ ଏ କୂଳରେ ଡଙ୍ଗା ଧରି ପହରା ଦେଉଥାଏ । ଏଇ ସମୟରେ ଦୂରରୁ ଲେଫଟ୍ ରାଇଟ୍ ଶୁଣାଗଲା ।

ବାଜିଆ ଦେଖିଲା ଗୋରା ଫଉଜ ମାଡ଼ି ଆସୁଛନ୍ତି ।

ସେ ଛାତି ଦମ୍ଭ କରି ଛିଡ଼ା ହେଲା ।

ସେ ପାଖରୁ ସର୍ଜେଣ୍ଟ ଡ଼ାକ ଛାଡ଼ିଲେ—"କିଏ ଅଛରେ ନାଉରୀ ! ଏପାରିକି ଡଙ୍ଗା ଆଣ । ଆମେ ପାରି ହେବୁ ।"

ଏ ପାଖରୁ ଜବାବ୍ ଶୁଭିଲା—"ପ୍ରଜାମଣ୍ଡଳୀର ହୁକୁମ୍ ନାହିଁ । ମୁଁ ଡଙ୍ଗା ନେଇ ପାରିବ ନାହିଁ ।"

"ଆରେ ପ୍ରଜାମଣ୍ଡଳୀର ହୁକୁମ୍ କ'ଣ, ତୁ ଆଣ୍ ତୋତେ ପୁରସ୍କାର ମିଳିବ ।"

—"ପୁରସ୍କାର ମୋର ଲୋଡ଼ା ନାହିଁ । ଦେଶ ଠାରୁ ସେ ପୁରସ୍କାର ମୋର ବଡ଼ ନୁହେଁ ।"

—"ଏ ଟୋକା ସେମିତି କହିଲେ ତୁ ଆଉ ଜୀବନ ପାଇବୁନି ।"

"ସେଥିପାଇଁ ପରବାୟ ନାହିଁ । ଏ ଜୀବନକୁ ମୁଁ ଅନେକ ଦିନରୁ ବ୍ରାହ୍ମଣୀ ନଈକୁ ପାଣି ଛଡ଼େଇ ଦେଇଛି ।"

ବାସ୍ ଏତିକି କଥା ବାଜିଆ ମୁଖରୁ ସରିଛି କି ନାହିଁ—ତା' ଛାତିରେ ଗୁଡ଼ୁମ୍ ଗୁଡ଼ୁମ୍ କରି ତିନୋଟି ଗୁଳି ଫୁଟିଲା। ଯେଉଁ ନଈ କୋଳରେ ପିଲାଦିନରୁ ସେ ବଢ଼ିକୁଢ଼ି ଆସିଥିଲା, ସେଇ ନଈ କୋଳକୁ, ଶେଷକୁ ସେ ଚିରଦିନ ପାଇଁ ବାଛି ନେଲା।

ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ତଥାପି ତା' ମୁଖରୁ ଶୁଭୁଥାଏ—"ଭାରତ ମାତା କି ଜୟ..."

ଜୟହିନ୍ଦ୍



